ନିର୍ଦ୍ଦିଷ୍ଟ ଘ ବିନ୍ଦୁରୁ ଘଙ୍କ ଲମ୍ବ ଟାଣ (୧୨ ଶ ପ୍ରଃ); ଆଉ ବର୍ଦ୍ଧିତ ଘଙ୍କ ରେଖା କଖ ଓ କଗ ରେଖାକୁ ଯଥାକ୍ରମେ ଙ ଓ ଚ ବିନ୍ଦୁରେ ଛେଦ କରୁ ତେବେ ଘଙଚ ରେଖା ନିର୍ଣ୍ଣେୟ ରେଖା ହେବ । ∵ ∠କଙଚ = ∠କଚଙ ( ୨୬ଶ ପ୍ରଃ ); ∴ ଏକ ନିର୍ଦ୍ଦିଷ୍ଟବିନ୍ଦୁ ଇତ୍ୟାଦି ।

### ୨୭ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୪୧ ଶ ଉପପାଦ୍ୟ ।

ଦୁଇ ସରଳରେଖା ଉପରେ ଅନ୍ୟ ଏକ ସରଳରେଖାର ସମ୍ପାତ ହେଲେ ଯେବେ ବହିସ୍ଥ ବିପର୍ଯ୍ୟସ୍ତ କୋଣଦ୍ୱୟ ଅର୍ଥାତ୍ ବଛଙ ଓ ଚଜଘ କୋଣ ପରସ୍ପର ସମାନ ହୁଏ, ତେବେ ଏହି ଦୁଇରେଖା ସମାନ୍ତର ହେବ ।




∵ ∠ବଛଙ = ∠ଚଜଘ ( କଳ୍ପନା ), ଏବଂ ∠କଛଙ = ∠ଖଛଜ ( ୧୫ ଶ ପ୍ରଃ ); ଓ ∠ଚଜଘ = ∠ଗଜଛ ( ୧୫ ଶ ପ୍ରଃ ); ∴ ∠ଖଛଜ = ∠ଗଜଛ ( ୧ ମ ସ୍ୱଃ ); ∴ କଖ ‖ ଗଘ ( ୨୭ ଶ ପ୍ରଃ ) ।

### ୪୨ ଶ ଉପପାଦ୍ୟ ।

ପ୍ରତିପନ୍ନ କର ଯେ ରମ୍ବସ ବା ଯେ ଚତୁର୍ଭୁଜର ସମ୍ମୁଖୀନ ବାହୁଗୁଡିକ ସମାନ, ସେ ସକଳ ସମାନ୍ତରିକ, ଆଉ ରମ୍ବସର କର୍ଣ୍ଣରେଖାଦ୍ୱୟ ପରସ୍ପର ଲମ୍ବଭାବେ ଛେଦ କରିବ ।




କଖଗଘ ରମ୍ବସ କ୍ଷେତ୍ରର କଖ, ଖଗ, ଗଘ ଓ ଘକ ପରସ୍ପର ସମାନ, ଅତଏବ କ୍ଷେତ୍ରଟି ସମାନ୍ତରିକ ହେବ । କଗ ଓ ଖଘ କର୍ଣ୍ଣରେଖା ଟାଣ । କଖଗ ଓ କଗଘ ଦୁଇ ତ୍ରିଭୁଜରେ କଖ = ଖଗ = ଗଘ = କଘ, କଗ ସାଧାରଣ ∴ ∠ଖକଗ = ∠କଗଘ ( ୮ ମ ପ୍ରଃ ) । ∴ କଖ ‖ ଗଘ ( ୨୭ ଶ ପ୍ରଃ ); ଏହିପରି କଘ ‖ ଖଗ ।

∴ କଖଗଘ କ୍ଷେତ୍ରଟି ସମାନ୍ତରିକ, ଆଉ କଗ ଓ ଖଘ ପରସ୍ପର ଲମ୍ବଭାବେ ଛେଦ କରିବ । କଖଗ ଓ କଘଗ ଦୁଇ ତ୍ରିଭୁଜ ମଧ୍ୟରେ ପ୍ରମାଣ ହେବ ଯେ ∠ଖକଗ = ∠ଗକଘ । ତେବେ ଖକଚ ଓ ଘକଚ ଦୁଇ ତ୍ରିଭୁଜର ଖକ = କଘ, ∠ଖକଚ = ∠ଚକଘ ଓ କଚ ସାଧାରଣ, ତାହାହେଲେ ଖଚ ଭୂମି = ଚଘ ଭୂମି ଏବଂ ଅବଶିଷ୍ଟ ∠କଚଖ = ∠କଚଘ ( ୪ ର୍ଥ ପ୍ରଃ ) । ∴ କଚ, ଖଘ ଉପରେ ଲମ୍ବଭାବରେ ଅବସ୍ଥିତ ( ୧୦ ମ ସଂ ) ।

### ୪୩ ଶ ଉପପାଦ୍ୟ ।

ଯେ ଚତୁର୍ଭୁଜର କର୍ଣ୍ଣଦ୍ୱୟ ପରସ୍ପରକୁ ଦ୍ୱିଖଣ୍ଡ କରେ, ତାହା ସମାନ୍ତରିକ । କଖଗଘ କୌଣସି ଚତୁର୍ଭୁଜର କଗ ଓ ଖଘ କର୍ଣ୍ଣଦ୍ୱୟ ପରସ୍ପରକୁ ଙ ବିନ୍ଦୁରେ ଦ୍ୱିଖଣ୍ଡ କରୁଅଛି, ଅତଏବ କଖଗଘ ଚତୁର୍ଭୁଜଟି ସମାନ୍ତରିକ ।




∵ କଙଘ ଓ ଗଙଖ ଦୁଇ ତ୍ରିଭୁଜର କଙ = ଗଙ; ଘଙ = ଖଙ, ∠କଙଘ = ∠ଗଙଖ ( ୧୫ ଶ ପ୍ରଃ ), ∴ ∠ଙକଘ = ∠ଙଗଖ ( ୪ ର୍ଥ ପ୍ରଃ ); ∴ କଘ ‖ ଖଗ ( ୨୭ ଶ ପ୍ରଃ ); ଏହିପରି କଖ ‖ ଗଘ, ∴ କଖଗଘ ଚତୁର୍ଭୁଜଟି ସମାନ୍ତରିକ, ଅତଏବ ଯେ ଚତୁର୍ଭୁଜର କର୍ଣ୍ଣଦ୍ୱୟ ଇତ୍ୟାଦି ।

## ୨୮ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୪୪ ଶ ଉପପାଦ୍ୟ ।

କଖଗଘ ଚତୁର୍ଭୁଜର ଖ କୋଣ ଯେବେ ଘ କୋଣର ସମାନ ହୁଏ, ଓ କଘ ବାହୁ ବୃଦ୍ଧି କଲେ, ବହିସ୍ଥ ଗଘଚ କୋଣ ଯେବେ କ କୋଣର ସମାନ ହୁଏ, ତେବେ କଖଗଘ କ୍ଷେତ୍ରଟି ସମାନ୍ତରିକ ହେବ ।




∵ ∠କ = ∠ଗଘଚ ( କଳ୍ପନା ) ∴ କଖ ‖ ଗଘ ( ୨୮ ଶ ପ୍ରଃ ); ଏବଂ ∠ଖ = ∠ଘ ( କଳ୍ପନା ); ∴ ∠କ + ∠ଖ =

∠ଗଘଚ + ∠କଘଗ = ୨ ∠ସମ ( ୧୩ ଶ ପୃଃ ) । ∴ କଘ ॥ ଖଗ ( ୬୮ ଶ ପୃଃ ) । ∴ କଖଗଘ ଚତୁର୍ଭୁଜଟି ସମାନ୍ତରକ ।

## ୬୯ ଶ ପ୍ରତଜ୍ଞାର ଅନୁଶୀଳନୀ ।

### ୪୫ ଶ ଉପପାଦ୍ୟ ।

ଯେବେ କୌଣସି ସରଳରେଖା ଦୁଇ ସମାନ୍ତର ସରଳରେଖା ମଧ୍ୟରୁ ଗୋଟିକର ଲମ୍ବ ହୁଏ, ତେବେ ଅନ୍ୟର ମଧ୍ୟ ଲମ୍ବ ହେବ ।




କଖ ଓ ଗଘ ଦୁଇଟି ସମାନ୍ତର ରେଖା, ଚଛ ରେଖା କଖର ଲମ୍ବ ହୋଇଅଛି, ଅତଏବ ଗଘର ମଧ୍ୟ ଲମ୍ବ ହେବ । ଚଛକୁ ବର୍ଦ୍ଧିତ କର ଗଘର ସହିତ ଜ ବିନ୍ଦୁରେ ମିଳିତ କର ।

କଖ ॥ ଗଘ ∴ ∠ଚଛଖ = ∠ଛଜଘ ଓ ∠ଚଛକ = ∠ଛଜଗ ( ୬୯ ଶ ପୃଃ ); କିନ୍ତୁ ∠ଚଛଖ ଓ ∠ଚଛକ ପ୍ରତ୍ୟେକେ ସମକୋଣ । ∴ ∠ଛଜଗ ଓ ∠ଛଜଘ ସମକୋଣ ; ∴ ଚଛ ବା ଚଜ, ଗଘ ରେଖାର ଲମ୍ବ ( ୧୦ ମ ସଂ ) ।

### ୪୬ ଶ ଉପପାଦ୍ୟ ।

ଦୁଇ ସମାନ୍ତର ସରଳରେଖାର ସଂଯୋଜକ ଅନ୍ୟ କୌଣସି ସରଳରେଖାର ମଧ୍ୟବିନ୍ଦୁ ଦେଇ ଦୁଇଟି ସମାନ୍ତର ରେଖା ପର୍ଯ୍ୟନ୍ତ ଯେ ସରଳରେଖା ଟଣା ଯିବ, ତାହା ମଧ୍ୟ ଏହି ବିନ୍ଦୁରେ ଦ୍ୱିଖଣ୍ଡିତ ହେବ ।

କଖ ଓ ଗଘ ଦୁଇଟି ସମାନ୍ତର ରେଖାର ସଂଯୋଜକ ଚଛ ରେଖାର ମଧ୍ୟବିନ୍ଦୁ ଡ ଦେଇ ଉକ୍ତ ସମାନ୍ତର ରେଖାଦ୍ୱୟ ପର୍ଯ୍ୟନ୍ତ ଯେ ସରଳରେଖା ଟଣା ଯିବ ତାହା ମଧ୍ୟ ସେହି ଡ ବିନ୍ଦୁରେ ଦ୍ୱିଖଣ୍ଡ ହେବ ।




ଚଛ ରେଖାର ଡ ବିନ୍ଦୁଦେଇ ଜଝ ରେଖା ଟାଣ, ତାହା ଯେପରି କଖ ଓ ଗଘର ସହିତ ଯଥାକ୍ରମେ ଜ ଓ ଝ ବିନ୍ଦୁରେ ମିଳିତ ହେଉ,

ତାହାହେଲେ ଙଜ ରେଖା ଙଠର ସମାନ ହେବ । କାରଣ; ∠ଙଚଜ = ∠ଙଛଠ ( ୨୯ ଶ ପ୍ରଃ ); ∠ଚଙଜ = ∠ଛଙଠ ( ୧୬ ଶ ପ୍ରଃ ); ଏବଂ ଙଚ = ଙଛ ( କଳ୍ପନା ) । ∴ ଙଜ = ଙଠ ( ୨୬ ଶ ପ୍ରଃ ) । ଅତଏବ ଦୁଇ ସମାନ୍ତର ସରଳରେଖାର ଇତ୍ୟାଦି ।

### ୩୦ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୪୭ ଶ ଉପପାଦ୍ୟ ।

୩୦ ଶ ପ୍ରତିଜ୍ଞାର ତତ୍ୱରେ ଙଚ, କଖ ଓ ଗଘର ମଧ୍ୟରେ ନ ଥାଇ ଯେବେ ଏକ ଶାର୍ଶ୍ୱରେ ଥାଏ ତେବେ ପ୍ରତିଜ୍ଞା କପର ପ୍ରମାଣ ହେବ ।

ଙଚ କଖର ସମାନ୍ତର ଓ ଙଚ, ଗଘର ସମାନ୍ତର ଅଛି, ତେବେ କଖ ଗଘର ସମାନ୍ତର ହେବ ।

ଙଚ ଓ କଖ ଏ ଦୁଇ ସମାନ୍ତର ରେଖା ଉପରେ ଛଜଝ ରେଖା ପଡିଥିବାରୁ ∠ଙଛଜ = ∠ଛଜଖ ଅଉ ∠ଛଜଖ = ∠କଜଝ ( ୧୫ ଶ ପ୍ରଃ ), ∴ ∠କଜଝ = ∠ଙଛଜ ( ୧ମ ସ୍ୱଃ ) । ଆଉ ଙଚ ଓ ଗଘ ସମାନ୍ତରାଳ ରେଖା ଉପରେ ଛଜଝ ରେଖା ପଡିଥିବାରୁ ∠ଙଛଜ = ∠ଜଝଘ = ∠କଜଝ । ∴ କଜଝ ଓ ଜଝଘ ଦୁଇ ବିପର୍ଯ୍ୟସ୍ତ କୋଣ ସମାନ ହେବାରୁ କଖ ଓ ଗଘ ରେଖାଦ୍ୱୟ ସମାନ୍ତରାଳ ( ୨୯ ଶ ପ୍ରଃ ); ଅତଏବ ୩୦ ପ୍ରତିଜ୍ଞାର ତତ୍ୱରେ ଇତ୍ୟାଦି ।

### ୪୮ ଶ ଉପପାଦ୍ୟ ।

କଖଗଘ ସାମନ୍ତରିକର ପରସ୍ପର ସମ୍ମୁଖୀନ କଘ ଓ ଖଗ ବାହୁଦ୍ୱୟ ଚ ଓ ଙ ପର୍ଯ୍ୟନ୍ତ ବୃଦ୍ଧି କରି ଘଚକୁ ଗଙର ସମାନ ଏବଂ ଙଚ ସଂଯୁକ୍ତ କରି ଦେଲେ କଖଙଚ ଗୋଟିଏ ସାମନ୍ତରିକ ହେବ ।




ଘଙ ରେଖା ଟାଣ । ଗଘଙ ଓ ଚଙଘ ଦୁଇ ତ୍ରିଭୁଜର ଗଙ=ଚଘ , ଘଙ ସାଧାରଣ ; ∠ଗଙଘ=∠ଚଘଙ ( ୨୯ ଶ ପ୍ରଃ ); ∴∠ଗଘଙ=∠ଚଙଘ (୪ର୍ଥ ପ୍ରଃ), ∴ଗଘ ॥ ଚଙ (୨୭ ଶ ପ୍ରଃ) ∴କଖ ॥ ଚଙ ( ୩୦ ଶ ପ୍ରଃ ); ∴ କଖଙଚ କ୍ଷେତ୍ରଟି ସମାନ୍ତରିକ ।

୩୧ ଶ ପ୍ରତିଜ୍ଞାର ଅନୁଶୀଳନୀ ।

୪୯ ଶ ଉପପାଦ୍ୟ ।

୩୧ଶ ପ୍ରତିଜ୍ଞାର ପ୍ରମାଣ ସ୍ଥଳରେ ୨୩ ଓ ୨୭ଶ ପ୍ରତିଜ୍ଞାର ସାହାଯ୍ୟ ନ ନେଇ ୧୧, ୧୨ ଓ ୨୮ ଶ ପ୍ରତିଜ୍ଞାର ସାହାଯ୍ୟଦ୍ୱାରା ପ୍ରମାଣ କର ।

ଗ ନିର୍ଦ୍ଦିଷ୍ଟ ବିନ୍ଦୁଠାରୁ କଖର ସମାନ୍ତରାଳ କରି ଏକ ସରଳରେଖା ଟାଣିବାକୁ ହେବ । ଗ ବିନ୍ଦୁଠାରୁ କଖ ସରଳ-




ରେଖା ଉପରେ ଗଘ ଲମ୍ବ ଟାଣ (୧୨ ଶ ପ୍ରଃ); ପୁନଶ୍ଚ ଗଘ ରେଖାର ଗ ବିନ୍ଦୁ ଉପରେ ଗଛ ଲମ୍ବ ଟାଣ ( ୧୧ ଶ ପ୍ରଃ ); ଆଉ ଗଛକୁ ଚ ପର୍ଯ୍ୟନ୍ତ ବୃଦ୍ଧି କର, ଚଛ ରେଖା କଖର ସମାନ୍ତରାଳ ହେବ ।

∵ ∠ଗଘଖ+∠ଛଗଘ=୨∠ସମ ; ∴ଚଛ ॥ କଖ ( ୨୮ ଶ ପ୍ରଃ ) । ଅତଏବ କୌଣସି ନିର୍ଦ୍ଦିଷ୍ଟ ବିନ୍ଦୁ ଦେଇ ଇତ୍ୟାଦି ।

୫୦ ଶ ଉପପାଦ୍ୟ ।

ଏକ ଶୀର୍ଷକୋଣବିଶିଷ୍ଟ କେତେଗୁଡିଏ ତ୍ରିଭୁଜର ଭୂମି ଯେବେ କୌଣସି ନିର୍ଦ୍ଦିଷ୍ଟ ବିନ୍ଦୁ ଦେଇ ଯାଏ , ତେବେ ଯେ ତ୍ରିଭୁଜର ଭୂମି ଏହି ବିନ୍ଦୁରେ ଦ୍ୱିଖଣ୍ଡ ହେବ, ସେହି ତ୍ରିଭୁଜଟି କ୍ଷୁଦ୍ରତମ ହେବ ।




କଖଗ ଓ କଙଚ ଦୁଇ ତ୍ରିଭୁଜର କ ଶୀର୍ଷ କୋଣଟି ସାଧାରଣ ଏବଂ ତାହାର ଖଗ ଓ ଙଚ ଭୂମି ଦୁଇଟି ଏକମାତ୍ର ଘ ବିନ୍ଦୁ ଦେଇ ଯାଇଅଛି । ତନ୍ମଧ୍ୟରୁ ଖଗ ଭୂମିଟି ଘ ବିନ୍ଦୁରେ ଦ୍ୱିଖଣ୍ଡ ହୋଇ-

ଅଛି । ଅତଏବ କଖଗ ତ୍ରିଭୁଜଟି କଙଚ ତ୍ରିଭୁଜଠାରୁ କ୍ଷୁଦ୍ରତର ହେବ । ଖ ବିନ୍ଦୁରୁ କଗ ରେଖାର ସମାନ୍ତର ଖଛ ରେଖା ଟାଣ, ତାହା ଘଙକୁ ଛ ବିନ୍ଦୁରେ ଛେଦ କରୁ ।

△ଘଖଛ=△ଘଗଚ ( ୨୯, ୨୬ ଓ ୪ର୍ଥ ପ୍ରଃ ); ∴ △ଘଖଙ > △ଘଚଗ; ଉଭୟରେ କଖଘଚ କ୍ଷେତ୍ରଟି ଯୋଗ କଲେ △କଙଚ > △କଖଗ । ∴ ଏକ ଶୀର୍ଷକୋଣବିଶିଷ୍ଟ ଇତ୍ୟାଦି ।

### ୪୧ ଶ ସମ୍ପାଦ୍ୟ ।

ଏକ ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ ସରଳରେଖାକୁ ତିନି ସମାନ ଅଂଶରେ ବିଭକ୍ତ କରିବାକୁ ହେବ । କଖ ଏକ ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ ସରଳରେଖା ଏହାକୁ ତିନି ସମାନ ଅଂଶରେ ବିଭକ୍ତ କରିବାକୁ ହେବ ।




କଖ ରେଖା ଉପରେ କଗଖ ସମବାହୁ ତ୍ରିଭୁଜ ଅଙ୍କିତ କର ତାହାର କ ଓ ଖ କୋଣକୁ କଘ ଓ ଖଘ ରେଖାଦ୍ୱାରା ଦ୍ୱିଖଣ୍ଡ କର ଏବଂ ଘ ବିନ୍ଦୁ ଦେଇ କଗର ସମାନ୍ତର ଏକ ରେଖା ଟାଣି ଖଗ ବାହୁକୁ ଙ ବିନ୍ଦୁରେ ଓ କଖ ବାହୁକୁ ଚ ବିନ୍ଦୁରେ ଛେଦ କର ( ୩୧ ଶ ପ୍ରଃ ); ପୁନଶ୍ଚ ସେହି ଘ ବିନ୍ଦୁରୁ ଖଗ ବାହୁର ସମାନ୍ତର ଏକ ରେଖା ଟାଣି କଖକୁ ଛ ବିନ୍ଦୁରେ ଛେଦ କର ( ୩୧ ଶ ପ୍ରଃ ) ।

∠ଗକଖ=∠ଘଚଛ, ∠ଗଖକ=∠ଘଛଚ ଏବଂ ∠ଗ=∠ଖଙଚ=∠ଚଘଛ; ∴ କଖଗ ସମବାହୁ ତ୍ରିଭୁଜର ତିନିଟି ସମାନ କୋଣ, ଘଚଛ ତ୍ରିଭୁଜର ତିନି କୋଣର ସମାନ ହେବାରୁ ଘଚଛ ତ୍ରିଭୁଜଟି ସମାନକୋଣୀ, ସୁତରାଂ ସମବାହୁ ( ୫ମ ଓ ୬ଷ୍ଠ ପ୍ରଃ ), ପୁନଶ୍ଚ ∠ଚକଘ=∠ଘକଖ=∠କଘଚ ( ୨୯ ଶ ପ୍ରଃ ); ∴ କଚ=ଘଚ ( ୬ ଷ୍ଠ ପ୍ରଃ ); ଏବଂ ∠ଛଖଘ=∠ଘଖଗ=∠ଖଘଛ ( ୨୯ ଶ ପ୍ରଃ ); ∴ ଖଛ=ଘଛ ( ୬ ଷ୍ଠ ପ୍ରଃ ); ∴ କଚ,

ଚଛ ଓ ଛଖ ଯଥାକ୍ରମେ ଘଚଛ ସମବାହୁ ତ୍ରିଭୁଜର ଭିନ୍ନବାହୁର ସମାନ ହେବାରୁ ସେମାନେ ମଧ୍ୟ ସମାନ । ∴ କଖ ନିର୍ଦ୍ଦିଷ୍ଟ ସୀମା-ବିଶିଷ୍ଟ ସରଳରେଖାଟି ଚ ଓ ଛ ବିନ୍ଦୁରେ ତିନି ସମାନ ଅଂଶରେ ବିଭକ୍ତ ହେଲା ।

### ୩୨ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୫୨ ଶ ସମ୍ପାଦ୍ୟ ।

ଏକ ସମକୋଣକୁ ତିନି ସମାନ ଅଂଶରେ ବିଭକ୍ତ କରିବାକୁ ହେବ ।

କଖଗ ଏକ ସମକୋଣ ଏହାକୁ ତିନି ସମାନଭାଗରେ ବିଭକ୍ତ କରିବାକୁ ହେବ ।

କଖ ରେଖା ଉପରେ କଖଘ ଏକ ସମବାହୁ ତ୍ରିଭୁଜ ଅଙ୍କିତ କର (୧ ମ ପ୍ରଃ); ଏବଂ କଖଘ କୋଣକୁ ଚଖ ଦ୍ୱାରା ଦ୍ୱିଖଣ୍ଡ କର (୯ ମ ପ୍ରଃ); ତାହାହେଲେ ଚଖ ଓ ଘଖ ଦ୍ୱାରା କଖଗ କୋଣଟି ତିନି ସମାନ ଅଂଶରେ ବିଭକ୍ତ ହେବ ।




∵ ∠କ = ∠କଖଘ = ∠ଘ (୫ ମ ପ୍ରଃ ଅନୁମାନ); କିନ୍ତୁ ∠କ + ∠କଖଘ + ∠ଘ = ୨ ∠ସମ (୩୨ ଶ ପ୍ରଃ) ତାହାହେଲେ ∠କଖଘ = $\frac{୨}{୩}$ ∠ ସମ ହେବାରୁ ଅବଶିଷ୍ଟ ∠ଘଖଗ = $\frac{୧}{୩}$ ∠ସମ । ଆଉ କଖଘ କୋଣଟି ଚଖ ଦ୍ୱାରା ଦ୍ୱିଖଣ୍ଡ ହୋଇଥିବାରୁ ∠କଖଚ = ∠ଚଖଘ = ∠ଘଖଗ = $\frac{୧}{୩}$ ∠ସମ । ∴ କଖଗ ସମକୋଣଟି ଚଖ ଓ ଘଖ ଦ୍ୱାରା ତିନି ସମାନ ଅଂଶରେ ବିଭକ୍ତ ହେଲା ।

### ୪୩ ଶ ଉପପାଦ୍ୟ ।

ତ୍ରିଭୁଜର ଶୃଙ୍ଗ ଓ ଭୂମିର ମଧ୍ୟବିନ୍ଦୁ ସଂଯୋଜକ ସରଳରେଖା, ଭୂମି ଅର୍ଦ୍ଧର ସମାନ ହେଲେ ଶୃଙ୍ଗସ୍ଥ କୋଣ ସମକୋଣ, ଆଉ ଅର୍ଦ୍ଧଠାରୁ ବଡ ହେଲେ ସୂକ୍ଷ୍ମକୋଣ ଓ କ୍ଷୁଦ୍ର ହେଲେ ସ୍ଥୂଳକୋଣ ହେବ ।

କଖଗ କୌଣସି ତ୍ରିଭୁଜର କ ଶୀର୍ଷବିନ୍ଦୁଠାରୁ ଭୂମି ଦ୍ୱିଖଣ୍ଡକାରକ କଘ ରେଖାଟି ଯେବେ ଖଗ ଭୂମିର ଅର୍ଦ୍ଧକର ସମାନ ହୁଏ ତେବେ ଖକଗ କୋଣଟି ସମକୋଣ ହେବ ।



∵ କଘ = ଖଘ = ଗଘ, ∴ ∠ଖ = ∠ଖକଘ (୫ମ ପ୍ରଃ); ଏବଂ ∠ଗ = ∠ଗକଘ (୫ ମ ପ୍ରଃ), ∴ ∠ଖ + ∠ଗ = ∠ଖକଗ (୨ ସ୍ୱ ସ୍ୱଃ), କିନ୍ତୁ କଖଘ ତ୍ରିଭୁଜର ଅନ୍ତରସ୍ଥ ତିନକୋଣ ଏକତ୍ରେ ଦୁଇ ସମକୋଣ (୩୨ ଶ ପ୍ରଃ); ଓ କଗଘ ତ୍ରିଭୁଜର କୋଣ ସବୁ ମଧ୍ୟ ଦୁଇ ସମକୋଣ (୩୨ ଶ ପ୍ରଃ); ଆଉ କଘଖ କୋଣ ଓ କଘଗ କୋଣ ଏକତ୍ରେ ଦୁଇ ସମକୋଣ (୧୩ ଶ ପ୍ରଃ); ∴ ∠ଖ + ∠ଗ + ∠ଖକଘ + ∠ଗକଘ = ୨ ∠ସମ । କିନ୍ତୁ ∠ଖ + ∠ଗ = ∠ଖକଘ + ∠ଗକଘ ପ୍ରମାଣ ହୋଇଅଛି; ∴ ∠ଖକଗ = ୧ ∠ସମ ।




ଆଉ ଯେବେ ଅର୍ଦ୍ଧକ ଅପେକ୍ଷା ବଡ ହୁଏ ତେବେ ସୂକ୍ଷ୍ମକୋଣ ହେବ । ∵ କଘ > ଖଘ ବା ଗଘ ∴ ∠ଖ > ∠ଖକଘ; ଓ ∠ଗ > ∠ଗକଘ (୧୮ ଶ ପ୍ରଃ) ∴ ∠ଖ + ∠ଗ > ∠ଖକଗ; କିନ୍ତୁ ∠ଖ + ∠ଗ + ∠ଖକଗ = ୨ ∠ସମ (୩୨ ଶ ପ୍ରଃ); ∴ ∠ଖକଗ ଏକ ସମକୋଣଠାରୁ କ୍ଷୁଦ୍ର ଅର୍ଥାତ୍ ସୂକ୍ଷ୍ମକୋଣ ।

ଆଉ ଯେବେ କଘ ଖଘ ଅପେକ୍ଷା କ୍ଷୁଦ୍ର ହୁଏ ତେବେ ସ୍ଥୂଳକୋଣ ହେବ। ∵ ଖଘ ବା ଗଘ $>$ କଘ, ∴ ∠ଖକଗ $>$ ∠ଖ + ∠ଗ (୧୮ ପ୍ରଃ ୨ୟ ସ୍ୱଃ) ; ଅତଏବ ଖକଗ କୋଣ ଏକ ସମକୋଣ ଅପେକ୍ଷା ବୃହତ୍ତର ଅର୍ଥାତ୍ ସ୍ଥୂଳକୋଣ । ଅତଏବ ତ୍ରିଭୁଜର ଶୃଙ୍ଗ ଓ ଭୂମିର ମଧ୍ୟବନ୍ଦୁ ଇତ୍ୟାଦି ।




୫୪ ଶ ଉପପାଦ୍ୟ ।

କୌଣସି ପଞ୍ଚଭୁଜର ବାହୁଗୁଡ଼ିକ ଉଭୟ ପାର୍ଶ୍ୱରେ ବୃଦ୍ଧି କଲେ ; ସେମାନେ ପରସ୍ପର ସଂଲଗ୍ନ ହୋଇ ଯେଉଁ କୋଣ ଉତ୍ପନ୍ନ କରିବେ, ସେମାନଙ୍କର ସମଷ୍ଟି ଦୁଇ ସମକୋଣର ସମାନ ହେବ ।



ଯେହେତୁ ପଞ୍ଚଭୁଜ କ୍ଷେତ୍ରର ପାଞ୍ଚଟି ଭୁଜର ଉପର ଅଙ୍କିତ ପାଞ୍ଚ ତ୍ରିଭୁଜର ଅନ୍ତରସ୍ଥ କୋଣଗୁଡ଼ି ଏକତ୍ରେ ୧୦ ସମକୋଣର ସମାନ (୩୨ ଶ ପ୍ରଃ) ତନ୍ମଧ୍ୟରୁ ପ୍ରତ୍ୟେକ ତ୍ରିଭୁଜର ଭୂମିସଂଲଗ୍ନ ଦୁଇ ଦୁଇଟି କୋଣ ଏକତ୍ରେ ୮ ସମକୋଣର ସମାନ ( ୩୨ ଶ ପ୍ରଃ ୨ୟ ଅନୁଃ ), ତାହା ହେଲେ ଅବଶିଷ୍ଟ ଶୃଙ୍ଗସ୍ଥ ପାଞ୍ଚଟି କୋଣ ଏକତ୍ରେ ଦୁଇ ସମକୋଣର ସମାନ । ଅତଏବ କୌଣସି ପଞ୍ଚଭୁଜର ଇତ୍ୟାଦି ।

୫୫ ଶ ଉପପାଦ୍ୟ ।

ଷଡ଼ଭୁଜ କ୍ଷେତ୍ରର ବାହୁଗୁଡ଼ିକୁ ଉଭୟ ପାର୍ଶ୍ୱରେ ବୃଦ୍ଧି କଲେ, ସେମାନେ ପରସ୍ପର ସଂଲଗ୍ନ ହୋଇ ଯେଉଁ କୋଣ ଉତ୍ପନ୍ନ କରିବେ ସେମାନଙ୍କର ସମଷ୍ଟି ଚାରି ସମକୋଣର ସମାନ ହେବ ।

ଯେହେତୁ ଷଡ଼ଭୁଜ କ୍ଷେତ୍ରର ଛଅଟି ଭୁଜର ଉପର ଅଙ୍କିତ



ଛଅଟି ତ୍ରିଭୁଜର ଅନ୍ତରସ୍ଥ କୋଣଗୁଡ଼ିକ ଏକତ୍ରେ ୧୨ ସମକୋଣର ସମାନ (୩୨ଶ ପ୍ରଃ) ; ତନ୍ମଧ୍ୟରେ ପ୍ରତ୍ୟେକ ତ୍ରିଭୁଜର ଭୂମିସଂଲଗ୍ନ ଦୁଇ ଦୁଇଟି କୋଣ ଏକତ୍ରେ ୮ ସମକୋଣର ସମାନ (୩୨ ଶ ପ୍ରଃ ୨ୟ ଅନୁଃ) । ତାହାହେଲେ ଅବଶେଷ ଶୃଙ୍ଗସ୍ଥ ଛଅଟି କୋଣ ଏକତ୍ରେ ଚାରିସମକୋଣର ସମାନ । ଅତଏବ ଷଡ଼ଭୁଜ କ୍ଷେତ୍ରର ଇତ୍ୟାଦି ।

## ୩୩ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୫୭ ଉପପାଦ୍ୟ ।

କୌଣସି ତ୍ରିଭୁଜର ଦୁଇ ବାହୁର ମଧ୍ୟବିନ୍ଦୁଦ୍ୱୟକୁ ସଂଯୁକ୍ତ କଲେ ଯୋଜକ ରେଖା ତୃତୀୟ ବାହୁର ସମାନ୍ତର ଓ ତାହାର ଅର୍ଦ୍ଧ ହେବ ।




କ ଖ ଗ ଏକ ତ୍ରିଭୁଜ ଏହାର କ ଖ ଓ କଗ ବାହୁଦ୍ୱୟର ମଧ୍ୟବିନ୍ଦୁ ଘ ଓ ଙ; ସରଳରେଖାଦ୍ୱାରା ସଂଯୁକ୍ତ ହୋଇଅଛି । ତେବେ ଘଙ, ଖ ଗର ସମାନ୍ତର ଓ ଅର୍ଦ୍ଧେକ ହେବ ।

ଗଚକୁ କଖର ସମାନ୍ତର କରି ଟାଣ ଓ ଘଙକୁ ଚ ପର୍ଯ୍ୟନ୍ତ ବୃଦ୍ଧି କର । କଖ ଓ ଗଚ ସମାନ୍ତର ସରଳରେଖା ଉପରେ ଘଚ ଓ କଗ ପଡ଼ିଥିବାରୁ ∠କଘଚ=∠ଘଚଗ ଓ ∠ଘକଙ=∠ଙଗଚ, ଆଉ (୧୫ ଶ ପ୍ରଃ) ∠କଙଘ=∠ଗଙଚ ; କଙ=ଙଗ ଅଛି, ସୁତରାଂ କଘ=ଗଚ ଓ ଘଙ=ଙଚ (୨୬ ଶ ପ୍ରଃ) । କଘ=ଘଖ ଏହେତୁ ଘଖ=ଗଚ, ∴ ଘଚ ‖ ଖଗ ଓ ସମାନ (୩୩ ଶ ପ୍ର) । ଘଙ ବାହୁ ଘଚ ର ଅର୍ଦ୍ଧେକ ପ୍ରମାଣ ହୋଇଅଛି, ସୁତରାଂ ଘଙ ବାହୁ ଖଗ ର ଅର୍ଦ୍ଧେକ । ଅତଏବ କୌଣସି ତ୍ରିଭୁଜର ଇତ୍ୟାଦି ।

## ୬୪ ଶ ପ୍ରତିଜ୍ଞାର ଅନୁଶୀଲନୀ ।

### ୫୭ ଉପପାଦ୍ୟ ।

ଯେବେ କୌଣସି ଚତୁର୍ଭୁଜ କ୍ଷେତ୍ରର ସମ୍ମୁଖସ୍ଥ ବାହୁ ଓ କୋଣ ସମାନ ହୁଏ; ତାହାହେଲେ ସେହି କ୍ଷେତ୍ର ସମାନ୍ତରାଳ ହେବ ।




କଖଗଘ ଗୋଟିଏ ଚତୁର୍ଭୁଜ, ଏହାର ସମ୍ମୁଖସ୍ଥ କଖ=ଗଘ, କଘ=ଖଗ; ∠ଖକଘ=∠ଖଗଘ ଏବଂ ∠କଖଗ=∠କଘଗ ଅଛି ତେବେ କ୍ଷେତ୍ରଟି ସମାନ୍ତରାଳ ହେବ । ଏହା ପ୍ରମାଣ କର ।

କଖଘ ଓ ଖଗଘ ଦୁଇ ତ୍ରିଭୁଜ ମଧ୍ୟରେ କଖ=ଗଘ; କଘ=ଖଗ ଓ ∠ଖକଘ=∠ଖଗଘ (ଦତ୍ତ); ତେବେ ଅବଶିଷ୍ଟ ∠କଘଖ =∠ଘଖଗ (୪ ର୍ଥ ପ୍ରଃ), ମଧ୍ୟ ଏମାନେ ବ୍ୟତ୍ୟସ୍ତ କୋଣ, ∴ କଘ ∥ ଗଖ (୨୭ ଶ ପ୍ରଃ) । କଘ ଓ ଖଗ ର ପ୍ରାନ୍ତଦ୍ୱୟର ସଂଯୁକ୍ତକାରକ କଖ ଓ ଗଘ ମଧ୍ୟ ସମାନ୍ତରାଳ (୩୩ ପ୍ରଃ) । ∴ କଖ ଗଘ କ୍ଷେତ୍ରଟି ସମାନ୍ତରାଳ ।

### ୫୮ ଉପପାଦ୍ୟ ।

ସମାନ୍ତରାଳ ଚତୁର୍ଭୁଜର କର୍ଣ୍ଣଦ୍ୱୟ ପରସ୍ପରକୁ ଦ୍ୱିଖଣ୍ଡ କରେ; ଆଉ ଯେଉଁ ଚତୁର୍ଭୁଜର କର୍ଣ୍ଣଦ୍ୱୟ ପରସ୍ପରକୁ ଦ୍ୱିଖଣ୍ଡ କରେ ସେ ସମାନ୍ତରାଳ ।




କଖଗଘ କୌଣସି ସମାନ୍ତରାଳର କଗ ଓ ଖଘ କର୍ଣ୍ଣଦ୍ୱୟ ପରସ୍ପର ଙ ବିନ୍ଦୁରେ ଛିନ୍ନ ହୋଇଅଛି ତେବେ କଙ, ଗଙ ର ଓ ଖଙ, ଘଙ ର ସମାନ ହେବ । କଙଘ ଓ ଖଙଗ ଦୁଇ ତ୍ରିଭୁଜର ∠ଙକଘ=∠ଙଗଖ, ଆଉ ∠କଘଙ=∠ଙଖଗ (୨୯ ଶ ପ୍ରଃ) ଏବଂ କଘ=ଖଗ (୩୪ ଶ ପ୍ରଃ) । ∴ କଙ=ଗଙ ଓ ଘଙ=ଖଙ (୨୬ ଶ ପ୍ର) ।

କଙଘ ଓ ଖଙଗ ଏ ଦୁଇ ତ୍ରିଭୁଜ ମଧ୍ୟରେ କଙ=ଙଗ; ଖଙ=ଙଘ; ଓ ∠କଙଘ=∠ଖଙଗ; ଅତଏବ କଘ=ଖଗ ଓ ∠କଘଙ=∠ଙଖଗ ( ୪ ର୍ଥ ପ୍ରଃ ) ! ଏଣୁ କଘ ଓ ଖଗ ସରଳରେଖା ଉପରେ ଘଖ ରେଖା ପଡ଼ି ବିପର୍ଯ୍ୟସ୍ତ କୋଣଦ୍ୱୟ ସମାନ କରିବାରୁ କଘ ॥ ଖଗ ( ୨୭ ଶ ପ୍ରଃ ) । ଏହିପରି ପ୍ରମାଣ ହେବ ଯେ କଖ ॥ ଗଘ, ଅତଏବ କଖଗଘ କ୍ଷେତ୍ରଟି ସମାନ୍ତରକ ।

୬୯ ଉପପାଦ୍ୟ ।

ସମକୋଣୀ ସମାନ୍ତରକର କର୍ଣ୍ଣଦ୍ୱୟ ପରସ୍ପର ସମାନ, ଏବଂ ବିଷମକୋଣୀ ସମାନ୍ତରକର ସୂକ୍ଷ୍ମକୋଣଦ୍ୱୟର ସଂଯୋଜକ କର୍ଣ୍ଣରେଖା ଅପର କର୍ଣ୍ଣ ଅପେକ୍ଷା ବୃହତ୍ତର ହେବ ।

କଖଗଘ ଗୋଟିଏ ସମକୋଣୀ ସମାନ୍ତରକ, ତାହାର କଗ ଓ ଖଘ କର୍ଣ୍ଣଦ୍ୱୟ ପରସ୍ପର ସମାନ ହେବ, କାରଣ କଖଗ ଓ ଘଗଖ ଏ ଦୁଇ ତ୍ରିଭୁଜର କଖ=ଘଗ ( ୩୪ ଶ ପ୍ରଃ ) । ଖଗ ସାଧାରଣ ଓ ∠କଖଗ=∠ଘଗଖ ( ୧୧ ଶ ସ୍ୱତଃ ) ; ∴ କଗ କର୍ଣ୍ଣ=ଖଘ କର୍ଣ୍ଣ (୪ର୍ଥ ପ୍ରଃ), ଅତଏବ ସମକୋଣୀ ସମାନ୍ତରକର କର୍ଣ୍ଣଦ୍ୱୟ ଇତ୍ୟାଦି ।




ପୁନଶ୍ଚ କଖଗଘ ସମାନ୍ତରକର ଖ ଓ ଘ ଦୁଇଟି ସୂକ୍ଷ୍ମକୋଣ ଓ କ ଓ ଗ କୋଣ ଦୁଇଟି ସ୍ଥୂଳ; ସୁତରାଂ କଖଘ ଓ କଖଗ ଦୁଇ ତ୍ରିଭୁଜର କଘ=ଖଗ ( ୩୪ ଶ ପ୍ରଃ ); କଖ ସାଧାରଣ; କିନ୍ତୁ ∠ଖକଘ > ∠କଖଗ; ∴ ଖଘ > କଗ ( ୨୪ ଶ ପ୍ରଃ ) । ଅତଏବ ବିଷମକୋଣୀ ସମାନ୍ତରକର ଇତ୍ୟାଦି ।




୭୦ ସମ୍ପାଦ୍ୟ ।

କୌଣସି ନିର୍ଦ୍ଦିଷ୍ଟ ସୀମାବଚ୍ଛିନ୍ନ ସରଳରେଖାକୁ ଯେତେଗୁଡ଼ିଏ ସମାନ ଅଂଶରେ ବିଭକ୍ତ କରିବାକୁ ହେବ ।




କଖ ଏକ ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ ସରଳରେଖାକୁ ଟିକେଟିଗୁଡିଏ (ଅର୍ଥାତ୍ ପାଞ୍ଚ ସମାନ) ଅଂଶରେ ବିଭକ୍ତ କରିବାକୁ ହେବ । କଖ ରେଖାର କ ବିନ୍ଦୁରେ ନମ୍ର କରି କୌଣସି ଏକ କଗ ରେଖା ଟାଣ । ପରେ କଗ ରେଖାରେ ଘ ନାମକ କୌଣସି ବିନ୍ଦୁ ନେଇ ଘଗ ରେଖାରୁ କଘ ର ସମାନ କରି ଘଙ, ଙଚ, ଚଛ, ଓ ଛଗ ଅଂଶଗୁଡିକୁ ଛେଦ କର ( ୩ ଯ୍ ପ୍ରଃ ); ଖଗ ସଂଯୁକ୍ତ କରି ଘ, ଙ, ଚ, ଛ ବିନ୍ଦୁଠାରୁ ଖଗ ର ସମାନ୍ତରଲେ କରି ଛଜ, ଚଝ, ଙଟ ଓ ଘଠ ରେଖାଗୁଡିକ ଟାଣ ( ୩୧ ଶ ପ୍ରଃ ) । ତହିଁରେ କଖ ରେଖା ଠ, ଟ, ଝ, ଜ ବିନ୍ଦୁରେ ପାଞ୍ଚ ସମାନ ଅଂଶରେ ବିଭକ୍ତ ହେବ ।

ଘ, ଙ, ଚ, ଛ ବିନ୍ଦୁଠାରୁ କଖ ର ସମାନ୍ତରାଳ କରି ଘତ, ଙଥ, ଚଦ, ଛଧ ରେଖାମାନ ଟାଣ ( ୩୧ ଶ ପ୍ରଃ ); କଘଠ ଓ ଘଙତ ଦୁଇ ତ୍ରିଭୁଜର ∠କ = ∠ଙଘତ ( ୨୯ ଶ ପ୍ରଃ ); ∠କଘଠ = ∠ଘଙତ ( ୨୯ ଶ ପ୍ରଃ ); କଘ = ଘଙ ( କ୍ରିୟା ); ∴ କଠ = ଘତ ( ୨୬ ଶ ପ୍ରଃ ) । ଏହିପରି ଘତ = ଙଥ = ଚଦ = ଛଧ । ପୁନଶ୍ଚ ଘତ, ଙଥ, ଚଦ, ଛଧ ଯଥାକ୍ରମେ ଠଟ, ଟଝ, ଝଜ ଓ ଜଖ ର ସହିତ ସମାନ ( ୩୪ ଶ ପ୍ରଃ ); ∴ କଠ = ଠଟ = ଟଝ = ଝଜ = ଜଖ । ଅତଏବ କୌଣସି ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ ସରଳରେଖାକୁ ଇତ୍ୟାଦି ।

### ୭୧ ସମ୍ପାଦ୍ୟ ।

କୌଣସି ସାମାନ୍ତରିକର ଏକବାହୁସ୍ଥିତ କୌଣସି ନିର୍ଦ୍ଦିଷ୍ଟ ବିନ୍ଦୁଠାରୁ ଏକ ସରଳରେଖା ଟାଣି ସମାନ୍ତରିକକୁ ଦ୍ୱିଖଣ୍ଡ କରିବାକୁ ହେବ ।




କଖଗଘ ଏକ ସମାନ୍ତରିକ ଏବଂ ଚ, କଘ ବାହୁସ୍ଥିତ ନିର୍ଦ୍ଦିଷ୍ଟ ବିନ୍ଦୁ; ଚ ବିନ୍ଦୁଠାରୁ ଏକ ରେଖା ଟାଣି ସମାନ୍ତରିକକୁ ଦ୍ୱିଖଣ୍ଡ କରିବାକୁ ହେବ । କଖଗଘ ସମା-

ନ୍ତରକର ଖଘ କର୍ଣ୍ଣକୁ ଛ ବିନ୍ଦୁରେ ଦ୍ୱିଖଣ୍ଡ କର ଚଜ ଯୋଗ କର; ଏବଂ ଚଜ ବର୍ଦ୍ଧିତ କଲେ ତଦ୍ଦ୍ୱାରା ସମାନ୍ତରକଟି ଦ୍ୱିଖଣ୍ଡ ହେବ, କାରଣ ଯେବେ ବର୍ଦ୍ଧିତ ଚଜ ରେଖା ଖଗକୁ ଝ ବିନ୍ଦୁରେ ଛେଦ କରେ ତେବେ △ଖଜଝ=△ଘଛଚ (୨୯; ୨୬; ୪ ର୍ଥ ପ୍ରଃ)। ସୁତରାଂ ଉଭୟରେ କଖଜଚ କ୍ଷେତ୍ରଟି ଯୋଗ କଲେ କଖଚଝ କ୍ଷେତ୍ରଟି କଖଘ ତ୍ରିଭୁଜର ସମାନ । କିନ୍ତୁ କଖଘ ତ୍ରିଭୁଜଟି କଖଗଘ ସମାନ୍ତରକର ଅର୍ଦ୍ଧ (୩୪ ପ୍ରଃ); ∴କଖଚଝ କ୍ଷେତ୍ରଟି କଖଗଘ ସମାନ୍ତରକର ଅର୍ଦ୍ଧ । ∴ଚଝ ରେଖାଦ୍ୱାରା ସମାନ୍ତରକଟି ଦ୍ୱିଖଣ୍ଡ ହେଲା ।

## ୬୨ ଉପପାଦ୍ୟ ।

ଯେ ସମାନ୍ତରକର ନିକଟବର୍ତ୍ତୀ ଦୁଇଟି ବାହୁ ସମାନ ଏବଂ ତାହାର ମଧ୍ୟଗତ କୋଣଟି ସମକୋଣ; ସେ ସମଚତୁର୍ଭୁଜ ହେବ ।

କଖଗଘ କୌଣସି ସମାନ୍ତରକର କଖ=ଖଗ; ଏବଂ ∠ଖ= ସମକୋଣ; କଖଗଘ ସମାନ୍ତରକଟି ସମଚତୁର୍ଭୁଜ ହେବ ।

ଗଘ=କଖ=ଖଗ=କଘ (୩୪ ଶ ପ୍ରଃ); ଆଉ ∠ଖ+∠କ=୨∠ସମ (୨୯ ଶ ପ୍ରଃ), ତନ୍ମଧ୍ୟରୁ ∠ଖ ସମକୋଣ; ତାହାହେଲେ ∠କ ମଧ୍ୟ ସମକୋଣ; ∴∠ଗ=∠କ=∠ଖ=∠ଘ (୩୪ ଶ ପ୍ରଃ); ∴କଖଗଘ ସମାନ୍ତରକର ଚାରିଟି ବାହୁ ସମାନ ଓ ଚାରିଟି କୋଣ ପ୍ରତ୍ୟେକେ ସମକୋଣ ହେବାରୁ ଏହା ସମଚତୁର୍ଭୁଜ (୩୦ ସଂ)।

## ୩୫ ଶ ପ୍ରତିଜ୍ଞାର ଅନୁଶୀଳନୀ ।

## ୬୩ ଉପପାଦ୍ୟ ।

ସମାନ ୨ ସମାନ୍ତରାଳ କ୍ଷେତ୍ର ଏକ ଭୂମି ଉପରେ ଏବଂ ଏକପାର୍ଶ୍ୱରେ ଥିଲେ ଏକ ସମାନ୍ତରାଳ ମଧ୍ୟରେ ରହିବେ ।



କଖଗଘ ଓ ଙଖଗଚ ଦୁଇଟି ସମାନ୍ତରିକ ଗୋଟିଏ ଭୂମି ଉପରେ ଏକ ଦିଗରେ ଅଛି ଅତଏବ ଏ ଦୁହେଁ ଏକ ସମାନ୍ତରାଳ ମଧ୍ୟରେ ଅର୍ଥାତ୍ କଘ ଓ ଙଚ ଏକ ରେଖାରେ ରହିବେ ।

ଯଦି କଘ ଓ ଙଚ ଏକ ରେଖାରେ ନ ଥାଏ ତେବେ କଘ କୁ ବୃଦ୍ଧି କଲେ ଯେପରି ତାହା ଖଙ ଓ ଗଚ କୁ ଯଥାକ୍ରମେ ଛ ଓ ଜ ବିନ୍ଦୁରେ ଛେଦ କରୁ । ∴ □ କଖଗଘ = □ ଛଖଗଜ (୩୫ ଶ ପ୍ରଃ) କିନ୍ତୁ □ କଖଗଘ = □ ଙଖଗଚ (କଳ୍ପନା) । ∴ □ ଛଖଗଜ = □ ଙଖଗଚ (୧ ସ୍ବତଃ); କିନ୍ତୁ ଏହା ଅସାଧ୍ୟ (୯ ସ୍ବତଃ) । ∴ କଘ ଓ ଙଚ ଏକ ରେଖା; ଏବଂ କଖଗଘ ଓ ଙଖଗଚ କ୍ଷେତ୍ରଦ୍ୱୟ ଏକ ସମାନ୍ତରାଳ ମଧ୍ୟରେ ଅଛି ।

୬୪ ଉପପାଦ୍ୟ ।

କଖଗ ତ୍ରିଭୁଜର କଖ ଓ କଗ ବାହୁ ଉପରେ କଖଘଙ ଓ କଗଚଛ ସମାନ୍ତରିକଦ୍ୱୟ ଅଙ୍କିତ କର ଏବଂ ଘଙ ଓ ଚଛ ବର୍ଦ୍ଧିତ କରି ଜ ବିନ୍ଦୁରେ ମିଳିଅଛି ତାହାହେଲେ କଖ ଓ କଗ ର ଉପରି ଅଙ୍କିତ ସମାନ୍ତରିକଦ୍ୱୟର ସମଷ୍ଟି ଖଗ ଭୂମି ଓ କଜ ର ଅନ୍ତର୍ଗତ ସମାନ୍ତରିକର ସମାନ ହେବ ।



ଖ ଓ ଗ ବିନ୍ଦୁଠାରୁ କଜ ର ସମାନ୍ତରାଳ ଦୁଇଟି ରେଖା ଟାଣ ତାହା ଯେପରି ଘଙ ଓ ଚଛ କୁ କ୍ରମାନ୍ୱୟରେ ଟ ଓ ଠ ବିନ୍ଦୁରେ ଛେଦ କରୁ । ଟ ଓ ଠ କୁ ସରଳରେଖାଦ୍ୱାରା ଯୋଗ କରି ଜକ କୁ ବର୍ଦ୍ଧିତ କର, ତାହା ଯେପରି ଟଠ ଓ ଖଗ କୁ ଡ ଓ ଥ ବିନ୍ଦୁରେ ଛେଦ କରୁ । ଖଟ = କଜ = ଗଠ (୩୪ ଶ ପ୍ରଃ) ।

ଟଖଗଠ ଗୋଟିଏ ସମାନ୍ତରିକ (୩୩ ଶ ପ୍ରଃ); ଖଟ ଓ କଜ ସମାନ ଓ ସମାନ୍ତରାଳ ହେବାରୁ ଟଖଗଠ ସମାନ୍ତରିକକୁ ଖଗ ଓ କଜ ର ଅନ୍ତର୍ଗତ ସମାନ୍ତରିକ ବୋଲିଯାଇ ପାରେ ।

∴ କଖଘଙ କ୍ଷେତ୍ର = □ ଜଝଠଞ = □ ଝଠଟଥ (୩୫ ଶ ପ୍ର); ସେହିପରି □ ଜଗଟଣ = □ ଜଚଠଞ = □ ଚଠଟଥ (୩୫ ଶ ପ୍ର); ∴ □ ଜଝଘଡ + □ ଜଗଚଣ = □ ଝଠଟଥ + □ ଗଠଟଥ = □ ଝଚଠଝ । ଅତଏବ କଙଗ ତ୍ରିଭୁଜର ଇତ୍ୟାଦ ।

୩୭ ଶ ପ୍ରତିଜ୍ଞାର ଅନୁଶୀଳନୀ ।

୬୫ ଉପପାଦ୍ୟ ।

ଯେବେ କୌଣସି ସମାନ୍ତରାଳ କ୍ଷେତ୍ରର ଭୂମି, କୌଣସି ବିଷମ ଚତୁର୍ଭୁଜ କ୍ଷେତ୍ରର ଦୁଇ ସମାନ୍ତରାଳ ବାହୁର ସମଷ୍ଟିର ଅର୍ଦ୍ଧ ସହିତ ସମାନ ହୁଏ; ଏବଂ ଉଭୟ କ୍ଷେତ୍ର ଏକ ସମାନ୍ତରାଳ ମଧ୍ୟରେ ଥାଏ ତେବେ ସେମାନେ ପରସ୍ପର ସମାନ ହେବେ ।




କଖଗଘ ଏକ ବିଷମଚତୁର୍ଭୁଜର କଘ ଓ ଖଗ ବାହୁଦ୍ୱୟ ସମାନ୍ତର; ପ୍ରମାଣ କରିବାକୁ ହେବ ଯେ କଘ ଓ ଖଗ ର ସମଷ୍ଟିର ଅର୍ଦ୍ଧପରିମିତ ଭୂମି-ବିଶିଷ୍ଟ ଏକ ସମାନ୍ତରିକ କଘ ଓ ଖଗ ସମାନ୍ତର ରେଖାଦ୍ୱୟ ମଧ୍ୟରେ ସ୍ଥାପିତ ହେଲେ ତାହା ବିଷମଚତୁର୍ଭୁଜର ସମାନ ହେବ । ଖଗ କୁ ବର୍ଦ୍ଧିତ କରି ତହିଁରୁ କଘ ର ସମାନ ଗଡ ଅଂଶ ଛେଦ କର ଏବଂ ଘ ଗ ଓ ଡ ବିନ୍ଦୁରୁ ଯଥାକ୍ରମେ ଘଚ, ଗଛ ଓ ଡଜ ରେଖା କଖ ର ସମାନ୍ତରାଳ କରି ଟାଣ (୩୧ ଶ ପ୍ର); ଘଚ ରେଖା ଖଗ କୁ ଏବଂ ଗଛ ଓ ଡଜ ରେଖା ବର୍ଦ୍ଧିତ କଘ କୁ ଯଥାକ୍ରମେ ଚ, ଛ ଓ ଜ ବିନ୍ଦୁରେ ଛେଦ କରୁ; ପରେ ଖଡ କୁ ଝ ବିନ୍ଦୁରେ ଦ୍ୱିଖଣ୍ଡ କର (୧୦ ମ ପ୍ର); ଆଉ ଝ ବିନ୍ଦୁରୁ କଖ ର ସମାନ୍ତରାଳ କରି ଝଠ ରେଖା ଟାଣ (୩୧ ଶ ପ୍ର) । ଗଡ = କଘ (କ୍ରିୟା) = ଖଚ (୩୪ ଶ ପ୍ର) ।

∴ □ ଛଝ = □ ଜଚ (୩୬ ଶ ପ୍ର); ଏବଂ △ ଛଘଗ = △ ଚଘଗ (୩୪ ଶ ପ୍ର); ∴ □ ଗଡଜଘ = □ କଖଗଘ (୨ ୟ ସ୍ୱତଃ);

ପୁନଶ୍ଚ □ କଚଠ = □ ଠଙ (୩୭ ଶ ପ୍ରଃ) । ∴ □ କଖଙଜ = □ ୨ କଖଗଘ = □ ୨ କଚଠ, ∴ □ କଖଗଘ = □ କଚଠ । ∴ କଘ ଓ ଖଗର ସମଷ୍ଟିର ଅର୍ଦ୍ଧ ଖଚ ର ଉପରେ ଅଙ୍କିତ କଚ ସମାନ୍ତରାଳ କ୍ଷେତ୍ରଟି କଖଗଘ ବିଷମ ଚତୁର୍ଭୁଜର ସହିତ ସମାନ ହୋଇ ସ୍ଥାପିତ ହେଲା ।

### ୩୭ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୬୬ ସାଧ୍ୟ ।

କୌଣସି ବିଷମଚତୁର୍ଭୁଜର ସମାନ ଏକ ତ୍ରିଭୁଜ ଅଙ୍କିତ କରିବାକୁ ହେବ । କଖଗଘ ନିର୍ଦ୍ଦିଷ୍ଟ ବିଷମଚତୁର୍ଭୁଜର ଘ ବିନ୍ଦୁଠାରୁ କ ଗ କର୍ଣ୍ଣର ସମାନ୍ତର କରି ଏକ ରେଖା ଟାଣ ଯେ କଖ ବାହୁକୁ ବୃଦ୍ଧି କଲେ ଙ ବିନ୍ଦୁରେ ଛେଦ କରିବ । ଙଗ ସଂଯୁକ୍ତ କର । ଙଖଗ ତ୍ରିଭୁଜଟି କଖଗଘ ବିଷମଚତୁର୍ଭୁଜର ସମାନ ହେବ । △ଙକଗ = △ଘକଗ (୩୭ ଶ ପ୍ରଃ) । ଉଭୟରେ △କଖଗ ଯୋଗ କଲେ କଖଗଘ କ୍ଷେତ୍ରଟି ଙଖଗ ତ୍ରିଭୁଜର ସମାନ ହେବ (୨ ୟ ସ୍ୱତଃ) ।

### ୩୮ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୬୭ ସାଧ୍ୟ ।

କୌଣସି ତ୍ରିଭୁଜର ଏକ ବାହୁସ୍ଥିତ କୌଣସି ନିର୍ଦ୍ଦିଷ୍ଟ ବିନ୍ଦୁରୁ ଏକ ସରଳରେଖା ଟାଣି ସେହି ତ୍ରିଭୁଜକୁ ଦ୍ୱିଖଣ୍ଡ କରିବାକୁ ହେବ ।

କଖଗ ଏକ ତ୍ରିଭୁଜ, ଏହାର କଗ ବାହୁସ୍ଥିତ ନିର୍ଦ୍ଦିଷ୍ଟ ଘ ବିନ୍ଦୁଠାରୁ ଘଙ ରେଖା ଟାଣି ତ୍ରିଭୁଜକୁ ଦୁଇ ସମାନ ଅଂଶରେ ବିଭକ୍ତ କରିବାକୁ ହେବ ।




କଖଗ ତ୍ରିଭୁଜର କଗ ବାହୁକୁ ଚ ବିନ୍ଦୁରେ ଦ୍ୱିଖଣ୍ଡ କରି ଖଚ ଓ ଖଘ ସଂଯୁକ୍ତ କର ଏବଂ ଚ ବିନ୍ଦୁଠାରୁ ଖଘ ର ସମାନ୍ତର ଚଙ ରେଖା

ଟାଣ, ତାହା ଯେପରି ଖଗ କୁ ଙ ବିନ୍ଦୁରେ ଛେଦ କରିବ । ଅତ ଘଙ ସଂଯୁକ୍ତ କଲେ ତଦ୍ଦ୍ୱାରା ତ୍ରିଭୁଜଟି ଦୁଇ ସମାନ ଅଂଶରେ ବିଭକ୍ତ ହେବ । △ଘଙଚ=△ଖଙଚ ( ୩୭ ଶ ପ୍ରଃ); ∴ ଉଭୟରେ △ଗଙଚ ଯୋଗ କଲେ △ଘଙଗ=△ଖଚଗ ( ୨ ସ୍ୱ ସ୍ୱତଃ ) । କିନ୍ତୁ △ଖଚଗ=△କଖଗ ର ଅର୍ଦ୍ଧ ( ୩୮ ଶ ପ୍ରଃ ) ; ∴ △ଘଙଗ =△କଖଗ ର ଅର୍ଦ୍ଧ । ∴ ଘଙ ରେଖା ଦ୍ୱାରା △କଖଗ ଦ୍ୱିଖଣ୍ଡ ହୋଇଅଛି ।

### ୬୮ ଉପପାଦ୍ୟ ।

କଖଗଘ ସମାନ୍ତରିକର କ ଓ ଗ କୌଣିକ ବିନ୍ଦୁଠାରୁ ଖଘ କର୍ଣ୍ଣସ୍ଥିତ କୌଣସି ନିର୍ଦ୍ଦିଷ୍ଟ ଙ ବିନ୍ଦୁ ପର୍ଯ୍ୟନ୍ତ କଙ ଓ ଗଙ ଦୁଇ ସରଳରେଖା ଟାଣିଲେ କଘଙ ତ୍ରିଭୁଜ ଗଘଙ ତ୍ରିଭୁଜର ସମାନ ହେବ ।



କଗ କର୍ଣ୍ଣ ଯୋଗ କର, ତାହା ଯେପରି ଖଘ କୁ ଚ ବିନ୍ଦୁରେ ଛେଦ କରୁ । କଚ=ଚଗ ( ୫୮ ଉପ ); ∴ △କଚଘ=△ଘଚଗ ଏବଂ △କଚଙ=△ଗଚଙ ( ୩୮ ଶ ପ୍ରଃ ) । ତାହାହେଲେ △କଙଘ =△ଗଙଘ ( ୨ ସ୍ୱ ସ୍ୱତଃ ) । ଅତଏବ କଖଗଘ ସମାନ୍ତରିକର ଇତ୍ୟାଦି ।

### ୩୯ ପ୍ରତିଜ୍ଞାର ଅନୁଶୀଳନୀ ।

### ୬୯ ଉପପାଦ୍ୟ ।

କଖଗଘ ବିଷମ ଚତୁର୍ଭୁଜର କଗ ଓ ଖଘ କର୍ଣ୍ଣଦ୍ୱୟ ପରସ୍ପରକୁ ଙ ବିନ୍ଦୁରେ ଛେଦ କଲେ ଯେବେ କଙଘ ତ୍ରିଭୁଜ ଗଙଖ ତ୍ରିଭୁଜର ସମାନ ହୁଏ; ତେବେ କଖ ବାହୁ ଗଘ ବାହୁର ସମାନ୍ତର ହେବ । △କଙଘ=△ଗଙଖ ( କଳ୍ପନା ); ଉଭୟରେ △କଙଖ ଯୋଗ କଲେ △କଖଗ=△କଖଘ; ∴ କଖ ∥ ଗଘ ( ୩୯ ଶ ପ୍ରଃ ) ।



### ୨୦ ଉପପାଦ୍ୟ ।

କୌଣସି ବିଷମ ଚତୁର୍ଭୁଜର ପ୍ରତ୍ୟେକ ବାହୁ ତ୍ରିଖଣ୍ଡ କରି ପରସ୍ପରର ନିକଟବର୍ତ୍ତୀ ଦୁଇ ଦୁଇଟି ମଧ୍ୟବିନ୍ଦୁ ସଂଯୁକ୍ତ କଲେ ତଦ୍ୱାରା ଯେ ଚତୁର୍ଭୁଜ ଉତ୍ପନ୍ନ ହେବ ତାହା ସମାନ୍ତରିକ, ଓ ବିଷମ ଚତୁର୍ଭୁଜର ଅର୍ଦ୍ଧେକ ହେବ ।



କଖଗଘ ଚତୁର୍ଭୁଜର କଖ, ଖଗ, ଗଘ ଓ ଘକ ଚାରିବାହୁ ପ୍ରତ୍ୟେକେ ଯଥାକ୍ରମେ ତ, ଛ, ଜ ଓ ଝ ବିନ୍ଦୁରେ ତ୍ରିଖଣ୍ଡ ହୋଇଅଛି; ପ୍ରମାଣ କରିବାକୁ ହେବ ଯେ ତଛଜଝ କ୍ଷେତ୍ରଟି ସମାନ୍ତରିକ ଓ ଓ ତାହା କଖଗଘ ଚତୁର୍ଭୁଜର ଅର୍ଦ୍ଧେକ ହେବ ;

ଖଘ କର୍ଣ୍ଣ; କଗ କର୍ଣ୍ଣକୁ ଙ ବିନ୍ଦୁରେ, ତଛକୁ ଟ ବିନ୍ଦୁରେ ଓ ଜଝକୁ ଡ ବିନ୍ଦୁରେ ଛେଦ କରୁ ଏବଂ କଗ କର୍ଣ୍ଣ, ତଝ ଓ ଛଜକୁ ଠ ଓ ଥ ବିନ୍ଦୁରେ ଛେଦ କରୁ । ତଛ ॥ କଗ ॥ ଜଝ ଏବଂ ଛଜ ॥ ଖଘ ॥ ତଝ ( ୫୭ ଉପ ) ; ∴ ତଛଜଝ କ୍ଷେତ୍ରଟି ସମାନ୍ତରିକ । ପୁନଶ୍ଚ △କଠତ = △ତଟଖ ( ୬୯, ୨୬ ଓ ୪ର୍ଥ ପ୍ରଃ ) ; ଏବଂ କଠ = ତଟ = ଠଙ ( ୨୭ ଓ ୩୪ ପ୍ରଃ ) ।

∴ □ତଙ = △କଠତ + △ତଟଖ । ଏହିପରି ପ୍ରମାଣ ହେବ ଯେ □ଛଙ + □ଜଙ + □ଝଙ = △ଟଖଛ + △ଗଥଛ + ଗଥଜ + △ଜଡଘ + △ଘଝ + △ଝଠକ । ∴ ତଛଜଝ ସମାନ୍ତରିକଟି କଖଗଘ ଚତୁର୍ଭୁଜର ଅର୍ଦ୍ଧ । ∴ କୌଣସି ଚତୁର୍ଭୁଜ ଇତ୍ୟାଦି ।

### ୪୦ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୨୧ ଉପପାଦ୍ୟ ।

ସମାନ ୨ ତ୍ରିଭୁଜ ଏକ ସମାନ୍ତରାଳ ରେଖାଦ୍ୱୟ ମଧ୍ୟରେ ଥିଲେ ସମାନ ୨ ଭୂମି ଉପରେ ଅବସ୍ଥିତ ହେବେ ।




କଖଗ ଓ ଘଗଙ ଦୁଇ ସମାନ ତ୍ରିଭୁଜ ଖଙ ଓ କଘ ଦୁଇ ସମାନ୍ତରାଳ ମଧ୍ୟରେ ଅନ୍ତର୍ଗତ ତାହାହେଲେ ଏ ଦୁଇ ତ୍ରିଭୁଜ ସମାନ ଭୂମି ଉପରେ ରହିବେ ।

△କଖଗ = △କଗଘ = △ଗଘଙ ( ୨୭ ଓ ୨୪ ପ୍ରଃ );

ତାହାହେଲେ ଖଗ = କଘ = ଗଙ । ଅତଏବ କଖଗ ଓ ଘଗଙ ଦୁଇ ତ୍ରିଭୁଜ ଖଗ ଓ ଗଙ ସମାନ ସମାନ ଭୂମି ଉପରେ ଅବସ୍ଥିତ ହେଲେ ।

୪୧ ଶ ପ୍ରତିଜ୍ଞାର ଅନୁଶୀଳନୀ ।

୭୨ ଉପପାଦ୍ୟ ।

କୌଣସି ସମାନ୍ତରାଳ କ୍ଷେତ୍ରର ଅଭ୍ୟନ୍ତରସ୍ଥ କୌଣସି ବିନ୍ଦୁରୁ ଯେବେ ଚତୁଃକୋଣ ପର୍ଯ୍ୟନ୍ତ ସରଳ ରେଖା ଟଣାଯାଏ, ତେବେ ସମ୍ମୁଖୀନ କୌଣସି ଦୁଇବାହୁ ଉପରେ ଯେଉଁ ତ୍ରିଭୁଜ ଅଙ୍କିତ ତାହା ଏକତ୍ରେ ସେହି ସମାନ୍ତରାଳର ଅର୍ଦ୍ଧ ହେବ ;




କଖଗଘ ସମାନ୍ତରାଳର ମଧ୍ୟରେ କୌଣସି ସ୍ଥାନରେ ଠ ନାମକ ଏକ ବିନ୍ଦୁ ନେଇ ତାହାଠାରୁ ଚାରି କୌଣିକ-ବିନ୍ଦୁ ପର୍ଯ୍ୟନ୍ତ ରେଖା ଟାଣିଲେ କଖଠ ଓ ଗଘଠ ଦୁଇ ତ୍ରିଭୁଜ ଏକତ୍ରେ କଖଗଘ କ୍ଷେତ୍ରର ଅର୍ଦ୍ଧ ହେବ ।

ଠ ବିନ୍ଦୁଦେଇ କଖ ବା ଗଘର ସମାନ୍ତରାଳ ଚଛ ଏକ ରେଖା ଟାଣ ତାହା ଯେପରି ଖଗ ଓ କଘ ବାହୁକୁ ଛ ଓ ଚ ବିନ୍ଦୁରେ ଛେଦ କରେ ।

△ କଖଠ = $\frac{1}{2}$ □ ଖଚ ଏବଂ △ଗଘଠ = $\frac{1}{2}$ □ ଗଚ

( ୪୧ ଶ ପ୍ରଃ ); ∴ △କଖଠ + △ଗଘଠ = $\frac{1}{2}$ □ କଖଗଘ ।

∴ କୌଣସି ସମାନ୍ତରାଳ କ୍ଷେତ୍ରର ଇତ୍ୟାଦି ।

## ୪୨ ଶ ପ୍ରତିଜ୍ଞାର ଅନୁଶୀଳନୀ ।

## ୭୩ ସମ୍ପାଦ୍ୟ ।

ଏକ ନିର୍ଦ୍ଦିଷ୍ଟ ସମାନ୍ତରିକର ସମାନ ଓ କୌଣସି ନିର୍ଦ୍ଦିଷ୍ଟ ସରଳରୈଖିକ କୋଣର ସମାନ ଏକକୋଣବିଶିଷ୍ଟ ଏକ ତ୍ରିଭୁଜ ଅଙ୍କିତ କରିବାକୁ ହେବ ।



କଖଗଘ କୌଣସି ସମାନ୍ତରାଳ କ୍ଷେତ୍ରର ସମାନ ଏବଂ ଜ ନିର୍ଦ୍ଦିଷ୍ଟ କୋଣର ସମାନକୋଣବିଶିଷ୍ଟ ଏକ ତ୍ରିଭୁଜ ଅଙ୍କିତ କରିବାକୁ ହେବ ।

କଖଗଘ ସମାନ୍ତରାଳ କ୍ଷେତ୍ରର ଖଗ ଭୂମିକୁ ଚ ପର୍ଯ୍ୟନ୍ତ ବୃଦ୍ଧି କରି ଗଚ କୁ ଖଗର ସମାନ କର ଏବଂ ଖଚ ରେଖାର ଖ ବିନ୍ଦୁରେ ଜ କୋଣର ସମାନ ଚଖଙ କୋଣ ଅଙ୍କିତ କର ( ୨୩ ଶ ପ୍ରଃ ) । ଖଙ ଯେପରି କଘ ବା ବର୍ଦ୍ଧିତ କଘ କୁ ଙ ବିନ୍ଦୁରେ ଛେଦ କରୁ ଙଗ ଓ ଙଚ ଯୋଗ କର । ତେବେ ଖଙଚ ସମ୍ପାଦ୍ୟ ତ୍ରିଭୁଜ ହେବ ।

∵ □କଖଗଘ = △ ୨ ଙଖଗ ( ୪୧ ଶ ପ୍ରଃ ); କିନ୍ତୁ △ଙଖଗ = △ଙଗଚ ( ୩୮ ଶ ପ୍ରଃ ); ∴ △ଙଖଗ + △ଙଗଚ = □କଖଗଘ = △ଙଖଚ । ∴ କୌଣସି ନିର୍ଦ୍ଦିଷ୍ଟ ସମାନ୍ତରାଳ କ୍ଷେତ୍ରର ସମାନ ଇତ୍ୟାଦି ।

## ୪୩ ଶ ପ୍ରତିଜ୍ଞାର ଅନୁଶୀଳନୀ ।

## ୭୪ ଉପପାଦ୍ୟ ।

୪୩ ଶ ପ୍ରତିଜ୍ଞା ଚିତ୍ରରେ ଙଜ, ଖଘ ଓ ଛଚ ସରଳରେଖା ଦ୍ୱାରା ସଂଯୁକ୍ତ କରି ପ୍ରମାଣ କର, ଏହି କର୍ଣ୍ଣରେଖାତ୍ରୟ ପରସ୍ପର ସମାନ୍ତରାଳ ହେବ । ଙଛ ଓ ଚଜ ଯୋଗ କର ।

□ଝଠ = □ଘଠ (୪୩ ଶ ପ୍ରଃ); ∴ △ଡଝଠ = △ଜଚଠ (୩୪ ଶ ପ୍ରଃ ଓ ୭ ମ ସ୍ୱଃ); ଉଭୟ ତ୍ରିଭୁ-




ଜରେ △ଡଠଜ ଯୋଗ କଲେ △ଡଝଜ = △ଜଚଡ; ∴ ଡଜ ∥ ଚଝ (୩୯ ଶ ପ୍ର) ପୁନଶ୍ଚ ଖଜ ଓ ଡଘ ଯୋଗ କର □ଠଖ = □ଠଘ (୪୩ ଶ ପ୍ରଃ) ଉଭୟରେ କଡଠଜ ସମାନ୍ତରାଲ କ୍ଷେତ୍ର ଯୋଗ କଲେ □ କଝ = □ଡଘ; ∴ △କଖଜ = △ଡଘକ (୩୪ ଶ ପ୍ରଃ ଓ ୭ମ ସ୍ୱତଃ); ଉଭୟରୁ △ କଡଜ ଅନ୍ତର କଲେ △ ଡଖଜ = △ ଡଘଜ; ∴ ଡଜ ∥ ଝଘ (୩୯ ଶ ପ୍ରଃ); କିନ୍ତୁ ଡଜ ∥ ଚଝ; ∴ ଚଝ ∥ ଡଜ ∥ ଖଘ ।




## ୪୪ ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୭୬ ସାଧ୍ୟ ।

ଏକ ନିର୍ଦ୍ଦିଷ୍ଟ ସମାନ୍ତରିକର ସମାନ ଓ ନିର୍ଦ୍ଦିଷ୍ଟ ସରଳରୈଖିକ କୋଣର ସମାନ ଏକ କୋଣବିଶିଷ୍ଟ ତ୍ରିଭୁଜ କୌଣସି ନିର୍ଦ୍ଦିଷ୍ଟ ସରଳ ରେଖା ଉପରେ ସ୍ଥାପନ କରିବାକୁ ହେବ ।

କଖ ଏକ ନିର୍ଦ୍ଦିଷ୍ଟ ସରଳରେଖା; ଚ ଏକ ନିର୍ଦ୍ଦିଷ୍ଟ ସମାନ୍ତରିକ ଏବଂ ଜ ଏକ ନିର୍ଦ୍ଦିଷ୍ଟ ସରଳରୈଖିକ କୋଣ; ଚ ସମାନ୍ତରିକର ସମାନ ଓ ଜ କୋଣର ସମାନ କୋଣବିଶିଷ୍ଟ ଏକ ତ୍ରିଭୁଜ କଖ ରେଖା ଉପରେ ସ୍ଥାପିତ କରିବାକୁ ହେବ ।




ନିର୍ଦ୍ଦିଷ୍ଟ କଖ ରେଖାକୁ ଘ ବିନ୍ଦୁରେ ଦ୍ୱିଖଣ୍ଡ କରି କଘ ରେଖା ଉପରେ କଘଡଗ ଗୋଟିଏ ସମାନ୍ତରାଲ କ୍ଷେତ୍ର ଏରୂପେ ଅଙ୍କିତ କର ଯେ କି ନିର୍ଦ୍ଦିଷ୍ଟ ଚ ସମାନ୍ତରିକର ସମାନ ଏବଂ ତାହାର ଗକଘ କୋଣ; ନିର୍ଦ୍ଦିଷ୍ଟ ଜ କୋଣର ସମାନ ହେବ । (ନିର୍ଦ୍ଦିଷ୍ଟ ଚ ସମାନ୍ତରିକକୁ ଦୁଇଟି ତ୍ରିଭୁଜରେ ବିଭକ୍ତ କରି ପୂର୍ବୋକ୍ତ (୪୪ ଶ ପ୍ରଃ ସାହାଯ୍ୟରେ

ଅଙ୍କିତ କର ) । ପରେ ଗଘ ଓ ଗଖ ସଂଯୁକ୍ତ କଲେ (କଖଗ ସମ୍ପାଦ୍ୟ ତ୍ରିଭୁଜ ହେବ । କାରଣ କଚଙ ସମାନ୍ତରାଳ କ୍ଷେତ୍ର ଓ କଖଗ ତ୍ରିଭୁଜ ଉଭୟ କଘଗ ତ୍ରିଭୁଜର ଦ୍ୱିଗୁଣ ହେବାରୁ ( ୩୪ ଓ ୪୮ ପ୍ରଃ ) ; △କଖଗ = □ କଚଙ = □ ଚ ; ଅଉ ତାହାର ∠ଗକଖ = ∠ଚ ॥ ∴ କୌଣସି ନିର୍ଦ୍ଦିଷ୍ଟ ସମାନ୍ତରଜରର ଇତ୍ୟାଦ ।

୪୫ ଶ ପ୍ରତିଜ୍ଞାର ଅନୁଶୀଳନୀ ।

୭୭ ସମ୍ପାଦ୍ୟ ।

କୌଣସି ନିର୍ଦ୍ଦିଷ୍ଟ ଚତୁର୍ଭୁଜର ସମାନ ଗୋଟିଏ ରମ୍ବସ ଅଙ୍କିତ କରିବାକୁ ହେବ ।




କ ଏକ ନିର୍ଦ୍ଦିଷ୍ଟ ଚତୁର୍ଭୁଜର ସମାନ ଏକ ରମ୍ବସ ଅଙ୍କିତ କରିବାକୁ ହେବ ।

କ ଚତୁର୍ଭୁଜର ସମାନ ଏବଂ ସମକୋଣବିଶିଷ୍ଟ ଏକ ଖଗଚଙ ସମାନ୍ତରଜ ଅଙ୍କିତ କର ( ୪୫ ଶ ପ୍ରଃ ) ( କିନ୍ତୁ ତାହାର ଖଙ ବାହୁ ଯେପରି ଖଗ ବାହୁଠାରୁ କ୍ଷୁଦ୍ର ହୁଏ ) ଏବଂ ଖ ବିନ୍ଦୁରୁ ଖଗର ସମାନ ଏକ ରେଖା ଟାଣି ଙଚର ସହିତ ଛ ବିନ୍ଦୁରେ ମିଳାଅ । ପରେ ଗ ବିନ୍ଦୁରୁ ଛଖର ସମାନ୍ତର କରି ଏକ ରେଖା ଟାଣି ବର୍ଦ୍ଧିତ ଙଚର ସହିତ ଘ ବିନ୍ଦୁରେ ମିଳାଅ । ତହିଁରେ ଛଖଗଘ ସମ୍ପାଦ୍ୟ ରମ୍ବସ କ୍ଷେତ୍ର ହେବ । ∴ ରମ୍ବସର ଚାରିଟି ବାହୁ ପରସ୍ପର ସମାନ ହୋଇଅଛି ( ୩୪ ଶ ପ୍ରଃ ୧ମ ସିଦ୍ଧାଃ ); କିନ୍ତୁ ଏକକୋଣ ସୁଦ୍ଧା ସମକୋଣ ନୁହେ ଅଉ ଏହା ମଧ୍ୟ ନିର୍ଦ୍ଦିଷ୍ଟ ଚତୁର୍ଭୁଜ କ୍ଷେତ୍ରର ସମାନ ହୋଇଅଛି ( ୩୫ ଶ ପ୍ରଃ ଓ ୧ମ ସିଦ୍ଧାଃ ) । ଅତଏବ କୌଣସି ନିର୍ଦ୍ଦିଷ୍ଟ ଚତୁର୍ଭୁଜର ସମାନ ଇତ୍ୟାଦ ।

୪୬ ଶ ପ୍ରତିଜ୍ଞାର ଅନୁଶୀଳନୀ ।

୭୭ ସମ୍ପାଦ୍ୟ ।

କୌଣସି ନିର୍ଦ୍ଦିଷ୍ଟ ସମଚତୁର୍ଭୁଜର ଚତୁର୍ଗୁଣ ଅଉ ଏକ ସମଚତୁର୍ଭୁଜ ଅଙ୍କିତ କରିବାକୁ ହେବ ।

କଖଗଘ ଏକ ନିର୍ଦ୍ଦିଷ୍ଟ ସମଚତୁର୍ଭୁଜ ଏହାର ଚତୁର୍ଗୁଣ କର ଗୋଟିଏ ସମଚତୁର୍ଭୁଜ ଅଙ୍କିତ କରିବାକୁ ହେବ । କଖ ବାହୁକୁ ଙ ବିନ୍ଦୁ ପର୍ଯ୍ୟନ୍ତ ଓ କଘ ବାହୁକୁ ଚ ବିନ୍ଦୁ ପର୍ଯ୍ୟନ୍ତ ବୃଦ୍ଧି କରି କଖ=ଖଙ; ଓ କଘ=ଘଚ, କର । ପରେ ଚ ବିନ୍ଦୁଠାରୁ ଖଙର ଓ ଙ ବିନ୍ଦୁଠାରୁ କଚର ସମାନ୍ତରାଳ କରି ଦୁଇଟି ରେଖା ଟାଣି ଦ୍ୱୟଙ୍କୁ ଛ ବିନ୍ଦୁରେ ମିଳାଅ । କଙଛଚ ସମଚତୁର୍ଭୁଜ, ନିର୍ଦ୍ଦିଷ୍ଟ କଖଗଘ ସମଚତୁର୍ଭୁଜର ଚତୁର୍ଗୁଣ ହେବ ।

ଖଗକୁ ବୃଦ୍ଧି କରି ଚଛ ବାହୁର ସହିତ ଜ ବିନ୍ଦୁରେ ଓ ଘଗକୁ ବୃଦ୍ଧି କରି ଙଛର ସହିତ ଝ ବିନ୍ଦୁରେ ମିଳାଅ । ଗଘ=କଖ=ଖଙ (କ୍ରିୟା)=ଗଝ (୩୪ଶ ପ୍ରଃ) ଏବଂ କଘ=ଖଗ=ଙଝ (୩୪ ଶ ପ୍ରଃ); ଅତ୍ୟ ∠କ=∠ଗଖଙ (୨୯ ଶ ପ୍ରଃ); ∠କଖଗ =∠ଖଙଝ (୨୯ ଶ ପ୍ରଃ); ∴ ଖଙଝଗ କ୍ଷେତ୍ର ସମଚତୁର୍ଭୁଜ (୩୦ ସଃ); ଏବଂ କଖଗଘ ସମଚତୁର୍ଭୁଜର ସହିତ ସର୍ବତୋଭାବେ ସମାନ (୭ଷ୍ଠ ଉପଃ); ସେହିପରି ଘଜ ଓ ଜଝ ସମାନ୍ତରିକ ଦୁଇଟି ମଧ୍ୟ ସମଚତୁର୍ଭୁଜ ଓ ପ୍ରତ୍ୟେକେ କଖଗଘ ସମଚତୁର୍ଭୁଜର ସମାନ । ∴ ସମସ୍ତ କଙଛଚ ସମଚତୁର୍ଭୁଜଟି କଖଗଘ ସମଚତୁର୍ଭୁଜର ଚତୁର୍ଗୁଣ । ∴ କୌଣସି ନିର୍ଦ୍ଦିଷ୍ଟ ସମଚତୁର୍ଭୁଜର ଚତୁର୍ଗୁଣ ଇତ୍ୟାଦି ।

## ୨୮ ଉପପାଦ୍ୟ ।

କୌଣସି ରେଖାର ଉପର ଅଙ୍କିତ ସମଚତୁର୍ଭୁଜ ସେହି ରେଖାର ଅର୍ଦ୍ଧକର ଉପର ଅଙ୍କିତ ସମଚତୁର୍ଭୁଜର ଚତୁର୍ଗୁଣ ।




କଖ କୌଣସି ସରଳରେଖା ଉପରେ କଖଗଘ ସମଚତୁର୍ଭୁଜ (୪୬ ଶ ପ୍ରଃ) ଅଙ୍କିତ କର କଖ ଓ କଘ ବାହୁଦ୍ୱୟକୁ ଯଥାକ୍ରମେ ଙ ଓ ଚ ବିନ୍ଦୁରେ ଦ୍ୱିଖଣ୍ଡ କର; ଙ ବିନ୍ଦୁରୁ କଘ କିମ୍ବା ଖଗର ସମା-

ନ୍ତର କର ଏକ ରେଖା ଟାଣି ଗଘ ବାହୁରୁ ଛ ବିନ୍ଦୁରେ ମିଳାଅ, ଆଉ ଚ ବିନ୍ଦୁରୁ କଖ କିମ୍ବା ଗଘର ସମାନ୍ତର କରି ଆଉ ଏକ ରେଖା ଟାଣି ଙଛକୁ ଠ ବିନ୍ଦୁରେ ଛେଦ କରି ଖଗର ସହିତ ଜ ବିନ୍ଦୁରେ ମିଳାଅ । କଖ = କଘ ∴ କଙ = ଙଚ ( ୭ମ ସ୍ୱତଃ ), ଆଉ ∠କ = ∠ସମ; ଅତଏବ □ କଠ = ସମଚତୁର୍ଭୁଜ ( ୬୨ ଉପଃ ); ସେହିପରି □ ଖଠ, □ ଗଠ ଓ ଘଠ ସେସବୁ ପ୍ରତ୍ୟେକେ ସମଚତୁର୍ଭୁଜ ଏବଂ ଏମାନେ ପ୍ରତ୍ୟେକେ କଖ ରେଖାର ଅର୍ଦ୍ଧର ଉପର ଅଙ୍କିତ ସମଚତୁର୍ଭୁଜର ସମାନ । ଅତଏବ କଖ$^2$ = ୪ କଙ$^2$ ( ୮ମ ସ୍ୱତଃ ) ।

## ୪୭ ପ୍ରତିଜ୍ଞାର ଅନୁଶୀଳନୀ ।

### ୭୯ ସମ୍ପାଦ୍ୟ ।

କେତେଗୁଡିଏ ନିର୍ଦ୍ଦିଷ୍ଟ ସମଚତୁର୍ଭୁଜର ସମାନ ଏକ ସମଚତୁର୍ଭୁଜ ଅଙ୍କିତ କରିବାକୁ ହେବ । ମନେ କର କଖଗଘ; ଚଛଜଝ ଓ ଟଠଡଢ ଏହି ତିନି ନିର୍ଦ୍ଦିଷ୍ଟ ସମଚତୁର୍ଭୁଜର ସମଷ୍ଟିର ସମାନ ଏକ ସମଚତୁର୍ଭୁଜ ଅଙ୍କିତ କରିବାକୁ ହେବ ।




ତଥ କୌଣସି ରେଖାକୁ କଖ ବାହୁର ସମାନ ନେଇ ତ ବିନ୍ଦୁଠାରୁ ତଥର ସହିତ ସମକୋଣ



କରି ତଦ ରେଖା ଟାଣ ଓ ତାହାକୁ ଚଛ ବାହୁର ସମାନ କରି ଥଦ ଯୋଗ କର । ପରେ ଥଦ ରେଖାର ସହିତ ସମକୋଣ କରି ଦ ବିନ୍ଦୁଠାରୁ ଦଧ ରେଖା ଟାଣ ( ୧୧ ଶ ପ୍ରଃ ) ଏବଂ ଦଧକୁ ଟଠ ବାହୁର ସମାନ କରି ଥଧ ସଂଯୁକ୍ତ କର । ଥଧ ରେଖା ଉପରେ ଗୋଟିଏ ସମଚତୁର୍ଭୁଜ ଅଙ୍କିତ କଲେ ( ୪୬ଶ ପ୍ରଃ ); ତାହା ନିର୍ଦ୍ଦିଷ୍ଟ

ତନ ସମଚତୁର୍ଭୁଜର ସମଷ୍ଟିର ସହିତ ସମାନ ହେବ । କାରଣ

ଥଧ$^{2}$ = ଦଥ$^{2}$ + ଥଦ$^{2}$ ( ୪୭ ଶ ପ୍ରଃ );

= ଦଥ$^{2}$ + ତଦ$^{2}$ + ତଥ$^{2}$ ( ୪୭ ଶ ପ୍ରଃ );

= ଝଠ$^{2}$ + ଚଛ$^{2}$ + କଙ$^{2}$ ।

## ୮୦ ଉପପାଦ୍ୟ ।

କୌଣସି ତ୍ରିଭୁଜର ଶୃଙ୍ଗଠାରୁ ଭୂମି ଉପରେ ଲମ୍ବପାତ କଲେ, ଭୂମିର ଦୁଇଖଣ୍ଡର ଉପର ଅଙ୍କିତ ସମଚତୁର୍ଭୁଜଦ୍ୱୟର ଅନ୍ତର ; ଅନ୍ୟ ଦୁଇବାହୁର ଉପର ଅଙ୍କିତ ସମଚତୁର୍ଭୁଜଦ୍ୱୟର ଅନ୍ତରର ସମାନ ।




କଖଗ କୌଣସି ତ୍ରିଭୁଜର କ ଶୃଙ୍ଗଠାରୁ ଖଗ ଭୂମି ଉପରେ କଘ ଲମ୍ବ ଟଣା ହୋଇଅଛି । ପ୍ରମାଣ କର ଯେ ଖଘ ଓ ଗଘ ଦୁଇଖଣ୍ଡର ଉପର ଅଙ୍କିତ ସମଚତୁର୍ଭୁଜଦ୍ୱୟର ଅନ୍ତର, କଖ ଓ କଗ ବାହୁଦ୍ୱୟର ଉପର ଅଙ୍କିତ ସମଚତୁର୍ଭୁଜଦ୍ୱୟର ଅନ୍ତରର ସହିତ ସମାନ ହେବ । କାରଣ

କଖ$^{2}$ = ଖଘ$^{2}$ + କଘ$^{2}$ ଏବଂ କଗ$^{2}$ = ଗଘ$^{2}$ + କଘ$^{2}$ ( ୪୭ ଶ ପ୍ରଃ )

∴ କଖ$^{2}$ − କଗ$^{2}$ = ଖଘ$^{2}$ − ଗଘ$^{2}$ ( ୩ ସ୍ୱ ସ୍ୱତଃ ) ∴ କୌଣସି ତ୍ରିଭୁଜର ଇତ୍ୟାଦି ।

## ୮୧ ଉପପାଦ୍ୟ ।

କଖଗ ସମକୋଣୀ ତ୍ରିଭୁଜର ଯେବେ କ କୋଣ ସମକୋଣ ହୁଏ, ଏବଂ ଖ ଓ ଗ ବିନ୍ଦୁଠାରୁ ଖଡ ଓ ଗଚ ଦୁଇ ସରଳରେଖା ସମ୍ମୁଖୀନ ବାହୁଦ୍ୱୟର ମଧ୍ୟବିନ୍ଦୁ ପର୍ଯ୍ୟନ୍ତ ଟଣାଯାଏ ତେବେ ୪ ( ଖଡ$^{2}$ + ଗଚ$^{2}$ )




=୨ଗଖ$^2$ । ∴ ୪ଗଚ$^2$+୪ଖଛ$^2$=୪କଗ$^2$+୪କଚ$^2$+୪କଙ$^2$+୪ଙଛ$^2$; କିନ୍ତୁ ୪ କଚ$^2$=କଖ$^2$ (୭୮ ଉପଃ) ଏବଂ ୪କଛ$^2$=କଗ$^2$ (୭୮ ଉପ) । ∴ ୪ ଗଚ$^2$ +୪ ଖଛ$^2$=୫ କଖ$^2$+୫ କଗ$^2$=୫ ଖଗ$^2$ (୪୭ ଶ ପ୍ରଃ) ।

## ୮୨ ଉପପାଦ୍ୟ ।

ରମ୍ବସର ଚାରିବାହୁର ଉପର ଅଙ୍କିତ ସମଚତୁର୍ଭୁଜର ସମଷ୍ଟି ତାହାର କର୍ଣ୍ଣଦ୍ୱୟର ଉପର ଅଙ୍କିତ ଦୁଇ ସମଚତୁର୍ଭୁଜର ସମାନ ।




କଖଗଘ ଗୋଟିଏ ରମ୍ବସ, ତାହାର କଗ ଓ ଖଘ କର୍ଣ୍ଣଦ୍ୱୟ ପରସ୍ପରକୁ ଙ ବିନ୍ଦୁରେ ଦ୍ୱିଖଣ୍ଡ କରୁଅଛି (୪୨ ଶ ଉପଃ) ।

∴ କଖ$^2$=କଙ$^2$+ଖଙ$^2$ (୪୭ ଶ ପ୍ରଃ) । ∴ ୪ କଖ$^2$=୪ କଙ$^2$ +୪ ଖଙ$^2$=କଗ$^2$+ଖଘ$^2$ (୭୮ ଉପଃ) । ∴ କଖ$^2$+ଖଗ$^2$+ ଗଘ$^2$+କଘ$^2$=କଗ$^2$+ଖଘ$^2$ ।

## ୮୩ ଉପପାଦ୍ୟ ।

କୌଣସି ସୂକ୍ଷ୍ମକୋଣୀ ତ୍ରିଭୁଜର ସୂକ୍ଷ୍ମକୋଣର ସମ୍ମୁଖୀନ ବାହୁ ଉପର ଅଙ୍କିତ ସମଚତୁର୍ଭୁଜ, ସୂକ୍ଷ୍ମକୋଣର ପାର୍ଶ୍ୱସ୍ଥ ଦୁଇ ବାହୁର ଉପର ଅଙ୍କିତ ସମଚତୁର୍ଭୁଜ ଅପେକ୍ଷା କ୍ଷୁଦ୍ର ହେବ ।

କଖଗ ଏକ ସୂକ୍ଷ୍ମକୋଣୀ ତ୍ରିଭୁଜ, ଏହାର ଖଗ ବାହୁର ଉପର ଅଙ୍କିତ ସମଚତୁର୍ଭୁଜ, କଖ ଓ କଗ ଦୁଇ ବାହୁର ଉପର ଅଙ୍କିତ ସମଚତୁର୍ଭୁଜର ଯୋଗଠାରୁ ସାନ ହେବ ।




ଗ ବିନ୍ଦୁଠାରୁ କଖ ରେଖା ଉପରେ ଏକ ଲମ୍ବ ଟାଣ (ଲମ୍ବଟି ତ୍ରିଭୁଜର ଅନ୍ତରସ୍ଥ ହେବ (୧୭ ପୃଃ) ଯେହେତୁ କ ଓ ଖ କୋଣ ଦୁଇଟି ସୂକ୍ଷ୍ମକୋଣ) ।

∵ କଗ′ 7 ଗଘ′ (୪୭ ଶ ପୃଃ) ∴ ଉଭୟେ ଖଘ′ ଯୋଗ କଲେ କଗ′ + ଖଘ′ 7 ଗଘ′ + ଖଘ′ (୪ ପୃଃ); କିନ୍ତୁ ଗଘ′ + ଖଘ′ = ଖଗ′ (୪୭ଶ ପୃଃ) ∴ କଗ′ + ଖଘ′ 7 ଖଗ′; ∴ କଗ′ + କଖ′ 7 ଖଗ′ ।

∴ କୌଣସି ସୂକ୍ଷ୍ମକୋଣୀ ତ୍ରିଭୁଜର ଇତ୍ୟାଦି ।

## ୮୪ ଉପପାଦ୍ୟ ।

କୌଣସି ସ୍ଥୂଳକୋଣୀ ତ୍ରିଭୁଜର ସ୍ଥୂଳ କୋଣର ସମ୍ମୁଖସ୍ଥ ବାହୁର ଉପର ଅଙ୍କିତ ସମଚତୁର୍ଭୁଜ ସ୍ଥୂଳକୋଣର ପାର୍ଶ୍ୱସ୍ଥ ଦୁଇ ବାହୁର ଉପର ଅଙ୍କିତ ସମଚତୁର୍ଭୁଜ ଅପେକ୍ଷା ବୃହତ୍ତର ହେବ ।

କଖଗ କୌଣସି ତ୍ରିଭୁଜର ଖକଗ କୋଣ ସ୍ଥୂଳକୋଣ, ଅତଏବ ଖଗ ବାହୁର ଉପର ଅଙ୍କିତ ସମଚତୁର୍ଭୁଜ, କଖ ଓ କଗ ଦୁଇ ବାହୁର ଉପର ଅଙ୍କିତ ସମଚତୁର୍ଭୁଜ ଦୁଇଟିର ସମଷ୍ଟିଠାରୁ ବୃହତ୍ତର ହେବ । ଗ ବିନ୍ଦୁଠାରୁ ବର୍ଦ୍ଧିତ ଖକ ବାହୁ ଉପରେ ଗଘ ଲମ୍ବ ଟାଣ । ∵ କୌଣସି ରେଖା ଯେଉଁଠାରୁ ଇଚ୍ଛା ସେଠାରୁ ଦୁଇ ଅଂଶରେ ବିଭକ୍ତ ହେଉ, ସେହି ରେଖାର ଉପର ଅଙ୍କିତ ସମଚତୁର୍ଭୁଜଟି ତାହାର ଖଣ୍ଡଦ୍ୱୟର ଉପର ଅଙ୍କିତ ସମଚତୁର୍ଭୁଜଦ୍ୱୟର ସମଷ୍ଟିଠାରୁ ବୃହତ୍ତର ହେବ; ଏହା



ତଏ ଅଙ୍କିତ କଲମାଏ ସ୍ପଷ୍ଟରୂପେ ଜଣାଯିବ (୪୬ ପ୍ର ୧ମ ସ୍ୱତଃ);
∴ ଖ'ଘ > କ'ଖ + କ'ଘ, ∴ ଉଭୟରେ ଗ'ଘ ଯୋଗ କଲେ ଖ'ଘ +
ଗ'ଘ > କ'ଖ + କ'ଘ + ଗ'ଘ (୮ ସ୍ୱତ) କିନ୍ତୁ ଖ'ଘ + ଗ'ଘ = ଖ'ଗ
ଏବଂ କ'ଘ + ଗ'ଘ = କ'ଗ (୪୬ ପ୍ରଃ), ∴ ଖ'ଗ > କ'ଖ + କ'ଗ ।

### ୪୮ଶ ପ୍ରତିଜ୍ଞାର ଅନୁଶୀଳନୀ ।

### ୮୫ ଉପପାଦ୍ୟ ।

ଯଦି କଖଗ ତ୍ରିଭୁଜର ଖଗ ବାହୁ କଖର ଦ୍ୱିଗୁଣ ହୁଏ, ଓ କଗର ଉପର ଅଙ୍କିତ ସମଚତୁର୍ଭୁଜ କଖର ଉପର ଅଙ୍କିତ ସମଚତୁର୍ଭୁଜର ତିନିଗୁଣ ହୁଏ; ତେବେ ଖକଗ କୋଣଟି ସମକୋଣ ହେବ ।

∴ ଖଗ = ୨ କଖ ∴ ଖଗ' = ୪ କଖ' (୭୮ ଉପ); ପୁନରପି କଗ' = ୩ କଖ' (କଳ୍ପନା); ∴ ଉଭୟରେ କଖ' ଯୋଗ କଲେ କଖ' + କଗ' = ୪ କଖ' (୨ୟ ସ୍ୱତ)




∴ କଖ' + କଗ' = ଖଗ' (୧ମ ସ୍ୱତଃ); ∴ ∠କ = ∠ସମ (୪୮ଶ ପ୍ରଃ) ∴ ଯଦି କଖଗ ତ୍ରିଭୁଜର ଇତ୍ୟାଦି ।

